# କାଲିର କବି



ଜଗନ୍ନାଥ ପ୍ରସାଦ ଦାସ

Digitized by PPRACHIN, SOA

ପୂର୍ବପୁରୁଷଙ୍କ ରଣରୁ ସ୍ୱଚ୍ଛନ୍ଦ ରହି
ସେମାନେ କବିତା ଲେଖିବାର ସ୍ପର୍ଦ୍ଧା କରନ୍ତି

ସେମାନଙ୍କ ଜନ୍ମ ଏମରଜେନ୍ସିର ନିଶାର୍ଦ୍ଧରେ
ସିଂହ ସେମାନଙ୍କର ବାହନ
ସେମାନଙ୍କର ପାଦରେ ବିଜୁଳି
ସେମାନଙ୍କର ପକେଟ୍‌ରେ କିଛି ନାହିଁ
ଦରଫୁଟା ସମ୍ଭାବନାର ଆସ୍ଥା ବ୍ୟତୀତ

ମଲ୍ଲାକବିଙ୍କର ମଶାଣି ଦେଇ ତାଙ୍କର ରାସ୍ତା
ସେମାନେ ଚନ୍ଦ୍ରଲୋକର ଠକଣା ଖୋଜୁଛନ୍ତି
ସେମାନେ ଯୋଜନା କରୁଛନ୍ତି
ଯାଇ ପିକ୍‌ନିକ୍ କରିବେ ବାଜିରାଉତର ଗାଁରେ
ସେମାନେ ପିତୃତର୍ପଣ କରୁଛନ୍ତି, ଚିୟର୍ସ କହି
ସେମାନେ ରାସ୍ତା ଉପରୁ ଘୁଞ୍ଚିବାକୁ ନାରାଜ
ସେମାନେ ହଲପ କରିଛନ୍ତି
ସେମାନେ ପୁନର୍ଜନ୍ମ ନେବେ କଳିଙ୍ଗନଗରରେ

Digitized by PPRACHIN, SOA

ସେମାନେ ପରସ୍ପରକୁ ଖୋଜୁଛନ୍ତି
ରୁପାଲି ଛକର ଆତୁର ଆଲୁଅରେ
ସେମାନେ ଜାଣନ୍ତି କାଲି ବୋଲି କିଛି ନାହିଁ
ସେମାନେଙ୍କ ହାତରେ କଲମ ଓ କଟାର
ସେମାନେ ବସିଛନ୍ତି ଗାନ୍ଧୀ ଟୋପି ପିନ୍ଧି
ଆନ୍ନାଙ୍କର ଅବିଚଳିତ ପ୍ରତିଜ୍ଞାକୁ ଆଉଜି

ହଳଦିଆ ପଡ଼ିଯାଇଥିବା କାଗଜକୁ
ସେମାନେ ଟୁକୁରା ଟୁକୁରା କରି ଫିଙ୍ଗି ଦେଉଛନ୍ତି
ସେମାନେ ଲାବଣ୍ୟବତୀକୁ ଭେଟିବାକୁ ଚାହାନ୍ତି
ସେମାନେ ନ ମରିବାର ଶପଥ ନେଇଛନ୍ତି
ସେମାନେ ବିୟୋଗାନ୍ତ ଛବି ଦେଖି କାନ୍ଦନ୍ତି
ସେମାନଙ୍କର ପ୍ରିୟବନ୍ଧୁ ସମସ୍ତେ କଳାହାଣ୍ଡିରେ

Digitized by PPRACHIN, SOA

ସେମାନେ ପହଁଚୁଛନ୍ତି ସ୍ରୋତର ଉଜାଣି
ସେମାନେ ପ୍ରଶ୍ନ କରି ଚାଲିଛନ୍ତି
ଉତ୍ତରର ଅପେକ୍ଷା ନ ରଖି
ସେମାନେ ଅଭ୍ୟାସ କରୁଛନ୍ତି
ଖୁର ଧାର ଉପରେ ଦଉଡ଼ି ଯିବାର
ସେମାନେ ପଦ୍ମାସନରେ ବସିଛନ୍ତି
ମହାବାତ୍ୟାର ମଧ୍ୟ ବିନ୍ଦୁ ଉପରେ
ସେମାନେ ନିଜକୁ ସମର୍ପଣ କରିଦେଉଛନ୍ତି
ନିଜ ଅଙ୍ଗୁଳିର ସମ୍ମୋହିତ ବିମର୍ଶ ପାଖରେ

ସେମାନେ ଦର୍ପଣକୁ ଭାଙ୍ଗିଦେଲେ
ସେମାନେ ପଚାରିଲେ ଗାନ୍ଧୀ କିଏ ବୋଲି
ସେମାନେ ଜହ୍ନରାତି ହେବାକୁ ଚାହିଁଲେ
ସେମାନେ ଚାରି ଦଉଡ଼ିକୁ ଛିଣ୍ଡାଇ ଦେଲେ
ସେମାନେ ହାଇକମାଣ୍ଡକୁ ଜବାବ ଦେଲେ
ସେମାନେ ଛଟପଟ ହେଲେ ଇଚ୍ଛାର ଉଷ୍ମାରେ
ସେମାନେ ଲାଞ୍ଚ ନେଉଥିବା ହାତକୁ କାଟିଦେଲେ
ହସପିଟାଲର ଝରକା ଖୋଲି
ସେମାନେ ମୃତ୍ୟୁକୁ ଦ୍ୱନ୍ଦ୍ୱଯୁଦ୍ଧର ଡାକରା ଦେଲେ

Digitized by PPRACHIN, SOA

ସେମାନେ କହିଲେ ଶାସ୍ତ୍ରସଂହିତା ଋଦ୍ଧିକ ମିଛ
ସେମାନେ ପୁଣ୍ୟର କାଳିମାକୁ ପୋଛିଦେଲେ
ସେମାନେ ପକ୍ଷୀଙ୍କର କଳରବରେ ସ୍ୱର ମିଳାଇଲେ
ସେମାନେ ମୁଦ୍ରାସ୍ଫୀତିକୁ ଟାପରା କଲେ
ସେମାନେ ଅପ୍ରତିଭ ଆଖିରେ ଆଶ୍ରୟ ଖୋଜିଲେ
ସେମାନେ ଚାଲିଗଲେ ବିଜୁଳିର ବ୍ୟୁହ ଭିତରକୁ
ସେମାନେ ଧଉଳିଗିରିରେ ରକ୍ତ ଦେଇ ଆସିଲେ

ସେମାନେ ଯାଇ ଆମ୍ବେଦକରଙ୍କ ମୂର୍ତ୍ତିରୁ
ଜୋତାମାଳ ବାହାର କରିଦେଲେ
ସେମାନେ ଲାଲ୍‌ମାଟି ଉପରେ ପତାକା ପୋତିଲେ
ସେମାନେ ନିଜକୁ ଚାରିଦିଗରେ ବୁଣିଦେଲେ
ସେମାନେ ଉଡାଇନେଲେ ସୂର୍ଯ୍ୟାସ୍ତରୁ ଡେଣାକୁ
ସେମାନେ ଗୁଣ୍ଡା ପ୍ରାର୍ଥୀଙ୍କୁ ନିର୍ବାଚନରେ ହରାଇଦେଲେ

Digitized by PPRACHIN, SOA